# ଜାନକୀବିଚ୍ଛେଦ ଚଉତିଶା ।



ଶ୍ରୀ ଶ୍ରୀଧଉ୍ସ୍ୟୃଙ୍କ ଦ୍ୱାରା

ଂଯୃ ବାର

ପ୍ରକାଶିତ ।



CUTTACK,

Printed by the Cuttack Printing Company.

1893.

ମୂଲ୍ୟ ୦ / ମାତ୍ର ।

# ଜାନକୀବିଚ୍ଛେଦ ଚଉତିଶା ।



## ରାଗ ରସକୋଇଲା ।

କମଳନେତ୍ର ଦଶରଥସୁତ । କଉଁ ବନେ ମାଲ୍ୟବନ୍ତ ପର୍ବତ । କରନ୍ତ ଚିନ୍ତା ସୀତା ଗୁଣ ଗୁଣି । କେଣେ ଛଡ଼ିଗଲୁ ପ୍ରାଣମଣି ଗୋ । କେମନ୍ତେ ବଞ୍ଚିବି ଦିନ ଗୋ । କୃଶୋଦରୀ ଗୋରି ତନୁସୁକୁମାରୀ ବିନୁ ନ ସରଇ ଦିନ ଗୋ ।

କ୍ଷଣକେ ତୋତେ ଦେନ ଗଲା ବଟ । ଖଞ୍ଜନୀନୟନ ମୋର ଅମୃତି । ଖାଇବି ତୋ ଲାଗି ନଷ୍ଟ ଗରଳ । କ୍ଷଣେ ପ୍ରାଣ ରଖିବାର କଫଳ ଗୋ । ଖୋଜ ପାଉ କାହିଁ ଗଲ ଗୋ । ଖରେ ଅସି ଶଶୀବଦନ ପ୍ରକାଶି ସନ୍ଦେଶ କହ ମୋ କତ ଗୋ ।

ଗଜେନ୍ଦ୍ରଗମନା ନୃପକୁମାରି । ଗୋଡ଼ାଇ ଅଇଲୁ ବୋଲ ନ କରି । ଗଞ୍ଜନ ବନେ ପାଇବାରୁ ଦୁଃଖ । ଗରୁଡ଼ ଦନେ ହୋଇଲୁ ବିମୁଖ ଗୋ । ଗୁଣ ଗୁଣେ ନିରନ୍ତର ଗୋ । ଗଲେ ଅଯୋଧ୍ୟାକୁ ଜନକକୁମାରୀ ଗୁଣ ମୁଁ ପୁଛିବି ତୋର ଗୋ ।

ଘନସ୍ତନୀ ଦେଖାଦେନି କହିବା । ଘୋଡ଼ାଇ ନୟନକୋଣେ ଚାହିଁବା । ଘେନଇ ନାହିଁ ମନେ ଅନ ବସ୍ତୁ । ଘୋର କପଟରୁ ଅଛୁ ବା ଲୁଚି ତୁ । ଘଡ଼ିକରେ କରୁ ଯାହା ଗୋ । ଘଟ ଛଡ଼ି ପ୍ରାଣ ଯାଉ ରେ ବେଗ ହୋଇ ନ ଚାଲିବ ମନେ ଏକା ଗୋ ।

ନୃପନନ୍ଦିନୀ ନୃପଭୂଅଶୁଣି । ନୃପ ମୁଁ ହେଲେ ହୋନ୍ତୁ ପାଟରାଣୀ । ନ ଥିଲା ଯେ ଲଲାଟରେ ଲେଖନ । ଆନ କେ ନେବାକୁ ହୋନ୍ତା ଭାଜନ ସେ । ନ ଥିଲା ତହିଁକି ଡର ଗୋ । ନାନା କଉତୁକେ ହାସ ପରିହାସେ ଦନ ନେଉଥିଲୁ ମୋର ।

ଗୃହ୍ନୁଁ ଥିଲ ମୋର ଚନ୍ଦ୍ରମାମୁଖ ! ତତେ ପାଉଥିଲ ଅନେକ ସୁଖ । ଗୃହ୍ଣୁ କରୁଥିଲ କୋଳେ ବସାଇ । ଚୁମ୍ବନ ମାଗିଲେ ବନସ୍ତ୍ର ହୋଇ ସେ । ଚୁମ୍ବ ଦେଇ ମୁଖେ ହସୁ ଗୋ । ଚମକାଇ ଚତୁ ଚମ୍ପକବରନା ଗୃଣ୍ଡେ ମୋଅଙ୍ଗରେ ମିଶୁ ଗୋ ।

ଛନ୍ଦି ମୋ ଅଙ୍ଗରେ ମୃଣାଳବାହୁ । ଛଳ ଭଙ୍ଗୀ କରି ମନକୁ ମୋହୁ । ଛତକ ଛତ ଯେ ଲଗାଉ ଥାଉ । ଛଡ଼ାଇ ଅଙ୍ଗୁ ଚନ୍ଦନ ପକାଉ ସେ । ଛଇଳୀ ତୋ ପରି ନାହିଁ ଗୋ । ଛାଡିବାକୁ ସଛ ଛରୂପେ ବଳଲ ଝାଡ଼ିଭାଗ ମୋତେ ଦେଇ ଗୋ ।

ଜଗତର ଯେତେ ଯେତେ ରାଜନ । ଜନକ ସଭାରେ ଥିଲେ ମିଳଣ । ଯୋଗ୍ୟ କେ ନୋହିଲେ ଧନୁ ଛୁଇଁଣ । ଯେତେ ରାଜା ଥିଲେ ସଭା ମଧ୍ୟେଣ ସେ । ଯାହାକୁ ଯେ ଯୋଗ ଥାଇ ଯେ । ଯତନେ ବଧାତା ଜାତ କରିଅଛୁ ତହିଁକି ଅନ୍ୟତ୍ର ନାହିଁ ଯେ ।

ଝିନବାସଶୋଭ ଜନକଗୋର । ଝଲକମୁଖି ତୋ କୃପାରୁ କର । ଝୁରୁଥିଲେ ଦେଖି କୋଟି ବ୍ରହ୍ମାଣ୍ଡ । ଝସକେଭୁର ତୋ ରୂପ କୋଦଣ୍ଡ ସେ । ଝାମ ଗଲେ ଦେଖି ରାଜା ଯେ । ଝରଂଝର କର ଆକାଶ କୁସୁମ ବରଷିଲେ ଦେବରାଜା ଯେ ।

ନୂଆଇ କହ ସେ କାଲ କଥନ । ନୟନ ଦେଖିଛୁ ଜାଣଇ ମନ । ନବରତ୍ନମାଳା ଦେଇ ଗଳାରେ । ନଷ୍ଟସ୍ୱେ ମିଳଲୁ

ଲୀଳାଗଡରେ ତୁ । ନ ଚାହିଁଲୁ କାହାକୁହିଁ ଗୋ । ନରପତି ମଧ୍ୟେ ବର ତୁ ବରିଲୁ ମୋ ଗଳାରେ ମାଳା ଦେଇ ଗୋ ।

ଟାଢ ବସିଥିଲେ ନୃପଛ ଯେତେ । ଟିକାଏ ନ ରହି ଗଲେ ସମସ୍ତେ । ଚେଷ୍ଟ ଭୂଜ ଭୋଟୁଥ ହୋଇଲ ବଧୂ । ଚେଣ୍ଡଳ-ବର୍ଣ୍ଣ୍ୟ ଦିବ୍ୟ ଅଙ୍ଗ ଶୋଭା ସେ । ଟଳବେ ଯୋଗୀନ୍ଦ୍ର ଦେଖି ଗୋ । ଟାଣେ ଯା ବଚନ ବୋଲିଚୁ ତୁ ମୋତେ ତହିଁକି ପ୍ରତାପ ଖ୍ୟାନ୍ତି ଗୋ ।

ଠିକେ କରତ ଏକନାରୀବ୍ରତ । ଠୁଳେ ଆନକୁ ନ ବଳଇ ଚିତ୍ତ । ଠାଣି ଚୋହ୍ଳପରି ଦେଖଇଁ ନାହିଁ । ଠାବେ ଠାବେ ବନ୍ଧ ଦାରୁଣ ବହି ସେ । ଠକଲା ମୃଗ ଦେଖାଇ ଗୋ । ଠାବ ନ କଲି ଆଗପଛ ଦୁଇଙ୍କ ନ ବୁଝି ଗଲି ମୁଁ ଧାଇଁ ଗୋ ।

ଡରେ ମୃଗର ଗଲା କାଳେ ପ୍ରାଣ । ଡାକିଲା ଲକ୍ଷ୍ମଣ ରଖ ବୋଲିଣ । ଡଙ୍କ ଲାଗିଲା ପ୍ରାୟ ହେଲି ଶୁଣି । ଡକାଇଥ ମୋତେ କଲା ମୃଗୁଣୀ ସେ । ଡାଳଦାରଠାକୁ ଯାଇ ଗୋ । ଡରହର ହୋଇ ଡାକପକାଇଲି ଅସ୍ତ ଅସ୍ତ ବଇଦେହି ଗୋ ।

ଢ ଳେ ତୋ ସମାସ୍ୟା ପାଇଲି ନାହିଁ । ତାଳେ ନେତ୍ରେ ପର୍ଣ୍ଣକୁଟିକି ଚାହିଁ । ତଳତଳ ହୋଇ ଦିଶିଲା ଶୂନ୍ୟ । ତଳ ମହୀରେ ହେଲି ହତଜ୍ଞାନ ସେ । ତାଳେ ମୋ ଜୀବନ ଗଲା ଗୋ । ତମ କନ୍ଧ କାହିଁ ତୋ ମୁଖକୁ ଚାହିଁ ଜୀବ ଥିବାକୁ ରହିଲା ଗୋ ।

ଥିହାସେ ଅମୂଲ୍ୟ ଅମୂଲ୍ୟ ଭାଷା । ଅଳପ କହିଲେ ଫୁଲି-ଇ ନାସା । ଅତ୍ୟନ୍ତ ପ୍ରମୋଦ ହୁଅଇଁ ଦେଖି । ଅଉ ମୁଁ କାହିଁ ପାଇବ ସୁମୁଖି ତା । ଅର୍ଜିଥିଲି କର୍ମେ ଏହା ଗୋ । ଅହା

ବୋଲିବାକୁ ମହାରାଜସ୍ୱଛା ବାହାରେ କେ ଅଛୁ ସାହା ।

ଛରୁଣୀ ଭୁ ମୋର ଏହି ବୟସେ । ଛେଳ ଗଲୁ ମୋ'ଛେ କେବଣ ଦୋଷେ । ଛଥାପି ଥକାଉଁ ଛାହାକୁ ଦେଇ । ଛହିଁ ଛ ସ୍ୱପନେ ଦେଖଇ ନାହିଁ ସେ । ଛଳେ ନ ପାରଇମୂର୍ଚ୍ଛି ଗୋ । ଛନାଦନ ନଷେଧିଲୁ ବୋଲୁଥାଉ ପାଶେ ଥିବାକୁ କ ଅଛୁ ଗୋ ।

ଥିର ଥିର କର କହୁ ବଚନ । ଥିବ ମୋଠାରେ ଏହି ଅବଧାନ । ଥୋକାଏ ଦନ ସୁଫଳ କରିବା । ଥୟୁ ନୋହିଲେ ସେ କଥା ଜାଣିବା ସେ । ଥୟୁ ନୋହିଲ ସେ କଥା ଗୋ । ଥାଉଁ୨ ଭୋର ଥବର ହୃଦୟୁ ଦେଉଛୁ ଅନଙ୍ଗ ବ୍ୟଥା ଗୋ।

ଦେଶ ଛାଡ ଥଇଲ ଏତେ ଦୂର । ଦୁଃଖ ନ ବାଧିଲ ଥି- ମାକୁ ଛୋର । ଦବସ ନଶି ଯାଉଥିଲ କେହି । ଦନେ ଦୁଃଖ ବୋଲ ଜାଣଇ ନାହିଁ ସେ । ଦଶୁ ନାହିଁ ମୋତେ ବୃଦ୍ଧି ଗୋ। ଦଶଦଶ ମୋତେ ଅନ୍ଧାର ଦଶୁଛୁ ଛୋ ବନୁମାବର୍ଣ୍ଣନଥି ଗୋ।

ଧାରାଧର ବରଷିବାର କାଳେ । ଧର ଯେ ବସିଥାଉ ମୋ- ଛେ କୋଳେ । ଧରଥାଏଁ ଶୃରୁଚରୂକ ଧନ । ଧୀରେ ଚୁମ୍ବଇ ଛୋ ଚନ୍ଦ୍ରବଦନ ସେ । ଧୀରେ ନ ଅନାଉଁ ମୋତେ ଗୋ । ଧରି ଧର କରି ଚୁମ୍ବନ ମାଗିଲେ ଭଙ୍ଗି କରୁଥାଉ କେତେ ଗୋ ।

ନ କରିବା କଥା କର ମୋ ବୋଲେ । ନାହିଁ କାହିଁ କରୁଥାନ୍ତି ଶୃହିଁଲେ । ନ ଜାଣିମା ଛୋର କେଉଁ ଚରିଛ । ନ ଯାଇ ମନୁ ସେ କାଳ ତରିଛ ସେ । ନାନା ଅଳଙ୍କାର

ବେଶେ ଗୋ । ନାନାଳଙ୍କ ହେଉଥାଉ ଚନ୍ଦ୍ରମୁଖି ଯେଉଁଠିବେଳେ ମିଶୁ ପାଶେ ଗୋ ।

ପଡିଲେ ଦୂରକୁ ଅମୃତଦୃଷ୍ଟି । ବୃଷଶରସବୁ କରଇ ବୃଷ୍ଟି । ପାଦକୁ ଗୃହଁ ହେଉଥାଉ ଉଭା । ପ୍ରମାଦ ଛୋଡର ସେକାଳ ଶୋଭା ଗୋ । ପାଦପଦ୍ମ ମୁଁ ଧରଇଁ ଗୋ । ପରମେଶ୍ୱର ଜାଣନ୍ତୁ ଯେତେ ଦୁଃଖ ଦେଇ ଗଲୁ ପ୍ରାଣସହି ଗୋ ।

ଫୁଟଇ ହୃଦପଦ୍ମ ପୋଷି ପୋଷି । ଫାଟି ଯା ରେ ମହି ଯିବି ମୁଁ ପଶି । ଫନ୍ଦା କରି ବୁଲୁଥିଲ ଯାହାକୁ । ଫାଟିଲା କର୍ମ ହରାଇଲି ତାକୁ ସେ । ଫଳ ମୋ ଘରଗଲାଣି ଗୋ । ଫୁଲାଇଁକ ଭାଗ୍ୟମାନ ଦେଇଥିଲ ଏଦୁଃଖ ଦେଲିଛ ପୁଣି ଗୋ ।

ବହୁତ ପାଠକ ଅଛି ମୁଁ କରି । ବର୍ଣ୍ଣିଲେ ସବୁପ୍ରକାରେ ସରି । ବଭାବସ୍ଥ ଶେଷେ ହୁଅନ୍ତ ରାଜା । ବଡଙ୍କର ଜାଣି ଜନ ପରଜା ସେ । ବଧାଛା ସହିଲା ନାହିଁ ଗୋ । ବନବାସ ଯାଅ ରାଜା ଆଜ୍ଞା ଦେଲେ କୈକେୟୀ ଦେଲେ ଯେ କହି ଗୋ ।

ଭ୍ରାନ୍ତ ନ କର ହୋଇଲି ବାହାର । ଭାଇ ଅଇଲା ସ୍ନେହ ବଶେ ମୋର । ଭାବନା ଏ ଦୁଃଖ ସହିବୁ ବୋଲି । ଭାଷା ନ ପେନଣ ଅଇଲୁ ଗୃହ ସେ । ଭଲ ଦଶୁ ନାହିଁ ମୋତେ ଗୋ । ଭୂପଡକୁମାଶ୍ୱ ଛନ୍ନୁସ୍ତକୁମାଶ୍ୱ ପାଦେ ଭ୍ରମିବୁ କେମନ୍ତେ ଗୋ ।

ମହା ଅରଣ୍ୟରେ ଦଇତ ବନ । ମର୍କଟ ଭଲ୍ଲୁକ ଗଣ୍ଡା ଗଯୂଳ । ମୃଗ ବରାହ ଶାର୍ଦ୍ଦୂଳ ମହିଷି । ମତ୍ତମାତଙ୍ଗ ବଳକାଟେ ମିଶି ସେ । ମହିଳା ଯେବେ ତୁ ଗୃହୁଁ ଗୋ । ମୋର ଅଙ୍ଗେ ମିଶି ଉଦ୍ୟରେ ପ୍ରବେଶି ଶ୍ରୀଅଙ୍ଗ ରକ୍ଷାଉ ଆଉ ଗୋ ।

ଯୋଗ୍ୟପଣ ତୋର ଅଛି ପ୍ରବଳ । ଯୋଗାଇ ରଖିଥାଉ ଫଳ ମୂଳ । ଯେଉଁ ଦାନ୍ତ କଷ୍ଟ ମିଳଇ ନାହିଁ । ଯୁବାମଣି ତୁ ନ କରୁ ମଣୋହି ସେ । ଯେବେ ମୁଁ ମୃଗୟା ଯାଇଁ ଗୋ । ଜଳ ପେନ୍ନ ବସିଥାଉ ଚନ୍ଦ୍ରମୁଖି ଆସିବାକୁ ବାଟ ଚାହିଁ ଗୋ ।

ରମଣୀମଣି ବିମ୍ବାଧର ଗୋର । ରସବନ୍ତ ତୁ ମୋ ପ୍ରାଣଈଶ୍ୱରୀ । ସ୍ୱଭାବର ଭଲ ଶୃରୁ ଚତୁର । ରମଣୀମଣି ପ୍ରାୟ ଅଟୁ ମୋର ତୁ । ସ୍ୱପ୍ନରେ ଥିବୁ ରହି ଗୋ । ରଜନୀ ଦିବସେ ନୟନୁ ଲୋତକ ଯାଉଥିବ ତୋର ବହି ଗୋ ।

ଲହୁଲି ବୟସ ତୋର ସହଜେ । ଲଜ୍ଜା ଖଣ୍ଡ ନାହିଁ ଜାଣଇ ମୁଁ ଯେ । ଲପନ ଲମ୍ବାଉ ଥିବୁ ମହୀରେ । ଲୋଡୁଥିବୁ ଏକା ମୋତେ ମନରେ ସେ । ଲଭୁଥିବୁ ଦୁଃଖ କେତେ ଗୋ । ଲଭାଏହରଷ ନ ଥିବ ତୋମନେ ମୋତେ ଭଜୁଥିବୁ ନିତ୍ୟେ ଗୋ ।

ବଡ଼ ଲଜ୍ଜା ହେଲା ସୂର୍ଯ୍ୟବଂଶକୁ । ବାଛିବେ ଯେ ରାଜାମାନେ ବୋଲକୁ । ସ୍ୱଅର୍ଥ ସାମର୍ଥପଣ ମୋହର । ବାଞ୍ଛିବା କଥା ବଡ଼ ଅସୁନ୍ଦର ସେ । ବାଟେ ପାଇଲା ସନ୍ଦେଶ ଗୋ । ବିଶ୍ରାବାର ସୁତ ରାବଣ ଚୋରଇ ନେଲା ତୋତେ ଲଙ୍କାଦେଶ ଗୋ ।

ସତ୍ୟ କରୁଛି ଛୁଇଁ ଧନୁ ଶର । ସଂଶୟ ଏଥିରେ ନାହିଁ ମୋହର । ଶୁଭେ ଲକ୍ଷ୍ମଣ ଆସୁ ସୁଗ୍ରୀ ସେନ । ସଙ୍ଗତେ ଥିବେ ମର୍କଟସଇନୀ ସେ । ସାଗରେ ବାନ୍ଧିବ ବନ୍ଧ ଗୋ । ସାକ୍ଷୀପ୍ରାୟ ହୋଇ ସମସ୍ତେହେଁ ଥିବ କ୍ଷେତ୍ରଦେବ ରାବଣ କନ୍ଧ ଗୋ ।

ସ୍ୱର୍ଗଲୋକେ ରହି ପାରବ ନାହିଁ । ସମୁଦ୍ରେ ଯେବେ ପଶି-ବ ପଳାଇଁ । ସମ୍ଭାଳବ ଯେବେ ପାତାଳପୁର । ସ୍ୱଗୋତ୍ରଯାକ ଯେନ ସଙ୍ଗରେ ସେ । ଶର ମୋ ଗୋଡ଼ାଇ ଥିବ ଗୋ । ସମୂଳ କର ତା ବଂଶକୁ ବନାଶି କ୍ରୋଧେଣ ମୋର ସମ୍ଭାଳବ ।

ସତେ ଏମନ୍ତ କହବ ସ୍ୱମୁଖି । ସଂଶୟ ଏଥିରେ ନାହିଁ ଟିକଟି । ସମୁଦ୍ର ପାର ହୋଇ ମୁଁ ଯୁଝିବି । ଶୁଦ୍ଧେ ଯେନ ତୋତେ ଅଯୋଧ୍ୟା ଯିବି ମୁଁ । ସନ୍ତୋଷ ହୋଇବ ମହୀ ଗୋ । ସୁଗ୍ରୀ ହନୁମାନ ଋକ୍ଷ କପିଗଣ ସଙ୍ଗତେ ଥିବ ଚଳାଇଁ ଗୋ ।

ହରଣୀକେଲି ଯେନ ତୋତେ କୋଳେ । ହରବ ହୃଦର ବେଦନା ବଳେ । ହେଉଛୁ ଯାହା ମଣାଇଁ କହବ । ହରଣୀ-କେଳି ହର୍ଦ୍ଦେ ନ ଛେକବ ସେ । ହେଲା ହର୍ଦ୍ଦେ ନ କହବ ଗୋ । ହଁସୁଳ ସୁପାତ୍ର ହୃଦରେ ଧନକୁ ଯେନ ହନ ବହୁଥିବ ଗୋ ।

କ୍ଷମେ ଅଯୋଧ୍ୟାରଜା ହେବ ଅସି । କ୍ଷତ୍ରିଙ୍କ ମଧ୍ୟେ ହେବ ପାଟବଂଶୀ । କ୍ଷମେ ଲକ୍ଷ୍ମଣ ଭ୍ରତ ଶତ୍ରୁଘ୍ନ । ଛଛନ୍ଦେ ସେବବେ ମୋର ଚରଣ ସେ । କ୍ଷୋଭ କାହାର ନଥିବ ଯେ । କ୍ଷମେ-ରାମାନନ୍ଦ ବୋଲେ ରାମଚନ୍ଦ୍ର ଯେକାଳେ ମୋ ହନ ଯିବ ହେ । ୩୪ ।

ସମ୍ପୂର୍ଣ୍ଣ ।

---